# ଭୂ-ସଂସ୍କାର କମିଟି

## ରିପୋର୍ଟ

ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିଙ୍କ ଦ୍ୱାରା
ପ୍ରକାଶିତ

# ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିଙ୍କର

# ଭୂ-ସଂସ୍କାର କମିଟି

## ରିପୋର୍ଟ

---

ଏ ପ୍ରଦେଶରେ ଭୂସଂସ୍କାର ସଂପର୍କରେ ଆଲୋଚନା କରି ଗୋଟିଏ ରିପୋର୍ଟ ଦେବା ନିମନ୍ତେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର କାର୍ଯ୍ୟକାରୀ ସମିତିର ତା୩-୯-୧୯୫୨ରିଖ ବୈଠକରେ ନିମ୍ନଲିଖିତ ବ୍ୟକ୍ତିଙ୍କୁ ନେଇ ଗୋଟିଏ କମିଟି ଗଠନ କରାଯାଇଥିଲା।

୧। ଶ୍ରୀ ବିଶ୍ୱନାଥ ଦାସ
୨। ଶ୍ରୀ ନବକୃଷ୍ଣ ଚୌଧୁରୀ
୩। ଶ୍ରୀ ହରେକୃଷ୍ଣ ମହତାବ
୪। ଶ୍ରୀ ପବିତ୍ରମୋହନ ପ୍ରଧାନ
୫। ଶ୍ରୀ କୃପାନିଧି ନାୟକ
୬। ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ
୭। ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ (ଆବାହକ)

ଏ କମିଟିର ସଭ୍ୟମାନଙ୍କ ମଧ୍ୟରୁ ଶ୍ରୀ ହରେକୃଷ୍ଣ ମହତାବ ବିଦେଶରେ ଥିବାରୁ କମିଟିର ବୈଠକମାନଙ୍କରେ ଯୋଗଦାନ କରି ପାରି ନ ଥିଲେ; କିନ୍ତୁ ତାଙ୍କର ମତ ଲିଖିତଭାବେ ଦେଇଥିଲେ । ଶ୍ରୀ କୃପାନିଧି ନାୟକ ମଧ୍ୟ କମିଟିର କୌଣସି ବୈଠକରେ ଯୋଗଦାନ କରିପାରି ନାହାନ୍ତି ।

କମିଟିର ବୈଠକ ତା ୪।୧୦।୫୨, ତା ୧୩।୧୦।୫୨ ଓ ତା ୨୩।୧୦।୫୨, ତା ୩୦।୧୦।୫୨ ଓ ତା ୪।୧୧।୫୨ରିଖ ମାନଙ୍କରେ ବସିଥିଲା । ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବ୍ୟତୀତ ଅନ୍ୟ ସଭ୍ୟମାନେ ପ୍ରତ୍ୟେକ ବୈଠକରେ ଯୋଗଦାନ କରିଥିଲେ । ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ତା ୧୩।୧୨।୫୨ ଓ ତା ୪।୧୧।୫୨ରିଖ ବୈଠକ ଦୁଇଟିରେ ଯୋଗଦାନ କରି ପାରି ନ ଥିଲେ ।

କମିଟି ତାଙ୍କର ରିପୋର୍ଟ ତିଆରି କରିବା ପାଇଁ ଆଲୋଚନା କଲାବେଳେ ଚୌଧୁରୀ କମିଟି ରିପୋର୍ଟ ଓ ଯୋଜନା କମିସନଙ୍କ ଠାରୁ ସାହାଯ୍ୟ ବହୁ ପରିମାଣରେ ନେଇଥିଲେ ।

କମିଟି ମୁଖ୍ୟତଃ ତିନୋଟି ବିଷୟକୁ ସମ୍ମୁଖରେ ରଖି ସମସ୍ତ ଆଲୋଚନା ଓ ବିଚାର କରିଛନ୍ତି ଏବଂ ଶେଷରେ ସେହି ବିଷୟମାନଙ୍କ ଉପରେ ନିଜର ନିଷ୍ପତ୍ତି ଗ୍ରହଣ କରିଛନ୍ତି । ବିଷୟ ତିନୋଟିକୁ ନିମ୍ନଲିଖିତଭାବରେ ରଖାଯାଇପାରେ ।

୧ । ଚାଷୀ ଜମିର ମାଲିକ ହେବ ।

୨ । ପ୍ରତ୍ୟେକ ପରିବାରର ଅଧିକାରରେ ରହିବା ଜମିର ସର୍ବୋଚ୍ଚ ପରିମାଣ ସ୍ଥିର ହେବ ।

୩ । ଭୂମି ସଂପର୍କୀୟ ସମସ୍ତ ବିଷୟର ନିଷ୍ପତ୍ତି ସ୍ଥାନୀୟ ପଞ୍ଚାୟତ କରିବେ ।

## ଚାଷୀ ଜମିର ମାଲିକ ହେବ [illegible]

୧ । ଯେଉଁ ବ୍ୟକ୍ତି ନିଜ ଜମିକୁ ନିଜେ ଚାଷ କରୁଥିବେ, ତାଙ୍କୁ ଚାଷୀ ବୁଝାଯିବ ଓ ସେହି ଚାଷୀହିଁ ଜମିର ମାଲିକ ହେବେ । ଜମିରେ ନିମ୍ନଲିଖିତ ପ୍ରକାରରେ ନିଜକୁ ନିୟୋଗ କରୁଥିଲେ ନିଜେ ଚାଷ କରୁଛନ୍ତି ବୋଲି ଧରାଯିବ ।

(କ) ନିଜ ଶ୍ରମଦ୍ୱାରା କରୁଥିବେ ।

(ଖ) ଏକାନ୍ନବର୍ତ୍ତୀ ପରିବାରର କୌଣସି ବ୍ୟକ୍ତିଙ୍କ ଶ୍ରମଦ୍ୱାରା କରାଉଥିବେ ।

(ଗ) ନିଜର ଚାକର ରଖି ତାଙ୍କର ଶ୍ରମ ସାହାଯ୍ୟରେ ବା ମୂଲିଆ ମଜୁରିଆ ସାହାଯ୍ୟରେ ନିଜର କିମ୍ବା ନିଜ ପରିବାରର ଅନ୍ୟ କୌଣସି ବ୍ୟକ୍ତିଙ୍କ ତତ୍ତ୍ୱାବଧାନରେ କରୁଥିବେ ।

ଉପରୋକ୍ତ ଶ୍ରେଣୀର ବ୍ୟକ୍ତିମାନଙ୍କ ବ୍ୟତୀତ ଆଉ କାହାର ହାତରେ ଜମି ରହିବ ନାହିଁ ।

**ବ୍ୟତିକ୍ରମ:—**

୩୭୫ ଭରଣ ଧାନ ବା ସେହି ଦାମର ଅନ୍ୟ ଦ୍ରବ୍ୟ ଉତ୍ପନ୍ନ ହେଉଥିବା ଜମିରୁ ଅଧିକ ଜମି ଯଦି କୌଣସି ବ୍ୟକ୍ତିଙ୍କର ନ ଥାଏ ଏବଂ ସେ ବ୍ୟକ୍ତି କୌଣସି ଉପାର୍ଜ୍ଜନଯୋଗ୍ୟ ବ୍ୟବସାୟରେ ନିଜକୁ ଲିପ୍ତ ରଖିଥାନ୍ତି ଓ ତାଙ୍କର ଉପାର୍ଜ୍ଜନ ମାସିକ ଏକଶତ ଟଙ୍କା ବା ତଦୂର୍ଦ୍ଧ୍ୱ ହୋଇ ନ ଥାଏ, ତାଙ୍କୁ ଏ ନିୟମ ଲାଗୁହେବ ନାହିଁ ଓ ସେ ଇଚ୍ଛାକଲେ ନିଜର ଜମି ଅନ୍ୟ କାହାରିକୁ ଭାଗ ଦେଇପାରିବେ ।

ନାବାଳକ, ପାଗଳ ଓ ସୈନ୍ୟ ବିଭାଗରେ କାର୍ଯ୍ୟ କରୁଥିବା କୌଣସି ବ୍ୟକ୍ତିଙ୍କର ଜମିକୁ ଚାଷ କରିବାପାଇଁ, ସେମାନଙ୍କ ପରିବାରରେ ସ୍ଥାନୀୟ ପଞ୍ଚାୟତଙ୍କ ମତରେ ଯଦି ଅନ୍ୟ କୌଣସି କାର୍ଯ୍ୟକ୍ଷମ ବ୍ୟକ୍ତି ନ ଥାନ୍ତି, ତେବେ ତାଙ୍କୁ ମଧ୍ୟ ଏହି ଆଇନର ବ୍ୟବସ୍ଥା ଖାଟିବ ନାହିଁ ।

କୌଣସି ଦେବାଳୟ ଜମିକୁ ଭାଗଦେବା ନ ଦେବା ବିଷୟରେ ସ୍ଥାନୀୟ ପଞ୍ଚାୟତ ନିଷ୍ପତ୍ତି କରିବେ ।

**କ୍ଷତିପୂରଣ:—**

ଯେଉଁମାନେ ନିଜେ ଜମି ଚାଷ କରି ନ ପାରିବେ ସେମାନଙ୍କର ଜମି ଯେଉଁ ଭାଗଚାଷୀଙ୍କ ଅଧିକାରରେ ଥିବ, ସେମାନେ ଉକ୍ତ ଜମିର ମାଲିକ ହେବେ ଓ ପୂର୍ବର ମାଲିକଙ୍କୁ ଜମିର ମୋଟ ଉତ୍ପାଦନର ତିନିଗୁଣ ଅଧେ କ୍ଷତିପୂରଣ ସ୍ୱରୂପ ଦେବେ ।

ଯେଉଁ କ୍ଷେତ୍ରରେ ଭାଗଚାଷୀ ସଙ୍ଗେ ସଙ୍ଗେ କ୍ଷତିପୂରଣ ଦେବାକୁ ସମର୍ଥ ହୋଇ ପାରିବେ ନାହିଁ, ସେ କ୍ଷେତ୍ରରେ ପ୍ରାଦେଶିକ ସରକାରଙ୍କ ଆଇନଦ୍ୱାରା ଧାର୍ଯ୍ୟ କରାଯାଇଥିବା ମତ ଅନୁସାରେ ସେ ଆସ୍ତେ ଆସ୍ତେ ଉକ୍ତ କ୍ଷତିପୂରଣ ବାବଦ ଟଙ୍କା ଶତକଡ଼ା ୨ ୨୫ ସୁଧ ସହ ଜମିର ପୂର୍ବତନ ମାଲିକଙ୍କୁ ଦେବେ ।

## ପ୍ରତ୍ୟେକ ପରିବାରର ଅଧିକାରରେ ରହିବା ଜମିର ସର୍ବୋଚ୍ଚ ପରିମାଣ ସ୍ଥିରହେବ

୧ । ଜମିର ମୋଟ ଉତ୍ପାଦନରୁ ସେ ବାବଦରେ ସମସ୍ତ ଖର୍ଚ୍ଚ ବାଦ୍‌ଯାଇ ବର୍ଷକୁ ୫ ୫୦୦୦୯ ଙ୍କା ଯେତିକ ଜମିରୁ ମିଳପାରିବ,

ସେତକ ଜମି କେବଳ ଗୋଟିଏ ପରିବାରର ଅଧିକାରରେ ରହି ପାରିବ ।

**କ୍ଷତିପୂରଣ:—**

ଜମିର ମୋଟ ଆୟରୁ ସେ ବାବଦରେ ସମସ୍ତ ଖର୍ଚ୍ଚ ବାଦ୍-ଯାଇ ଯାହା ରହିବ, ତାହାର ଉପରେ ନିମ୍ନଲିଖିତ ପ୍ରକାର ହିସାବମତେ ଜମିମାଲିକ କ୍ଷତିପୂରଣ ପାଇବେ ।

ନିଟ୍ ଆୟର ପରିମାଣ ଟ ୫୦୦୯ ହେଲେ ତହିଁର ପନ୍ଦର ଗୁଣ,
ପରବର୍ତ୍ତୀ ଟ ୩୫୦୦୯ ପର୍ଯ୍ୟନ୍ତ ତେର ଗୁଣ
ପରବର୍ତ୍ତୀ ଟ ୩୦୦୦୯ ପର୍ଯ୍ୟନ୍ତ ଦଶଗୁଣ,
ପରବର୍ତ୍ତୀ ଟ ୩୦୦୦୯ ପର୍ଯ୍ୟନ୍ତ ସାତଗୁଣ,
ପରବର୍ତ୍ତୀ ଟ ୧୫୦୦୦୯ ପର୍ଯ୍ୟନ୍ତ ପାଞ୍ଚଗୁଣ,
ପରବର୍ତ୍ତୀ ଟ ୧୫୦୦୦୯ ପର୍ଯ୍ୟନ୍ତ ଚାରିଗୁଣ,
ସେଥିରୁ ଅଧିକ ଆୟ ଦେଖାଗଲେ ଅବଶିଷ୍ଟ ଉପରେ ତିନିଗୁଣ ।

**ବଳକା ଜମି ବଣ୍ଟନ:—**

(କ) ଜମିର ସର୍ବୋଚ୍ଚ ପରିମାଣ ଧାର୍ଯ୍ୟ ହେବା ଫଳରେ ଯେଉଁ ବଳକା ଜମି ବାହାରିବ, ଉକ୍ତ ଜମିର ବଣ୍ଟନର ଦାୟିତ୍ୱ ସ୍ଥାନୀୟ ପଞ୍ଚାୟତଙ୍କ ଉପରେ ନ୍ୟସ୍ତ କରାଯିବ ।

(ଖ) ଭୂମିହୀନ 1 କୃଷିଶ୍ରମିକ ଓ ମ ୭୫ ମଣ 2 ଧାନ ବା ସେହି ମୂଲ୍ୟର ଅନ୍ୟ ଦ୍ରବ୍ୟ ଉତ୍ପନ୍ନ ହେଉଥିବା ପର୍ଯ୍ୟନ୍ତ ଜମି ଯେଉଁ ଚାଷୀମାନଙ୍କର ଥିବ, ସେଭଳି ଶ୍ରେଣୀ ଚାଷୀମାନଙ୍କ ମଧ୍ୟରେହିଁ କେବଳ ଏ ବଳକା ଜମି ବଣ୍ଟନ କରାଯିବ ।

(ଗ) ଭୂମିହୀନ କୃଷି ଶ୍ରମିକଙ୍କର କୋଅପରେଟିଭ ଗଠନ କରି ଅନାବାଦୀ ଜମି କେବଳ ସେହି କୋଅପରେଟିଭ ମାନଙ୍କୁ ଦିଆଯିବ । ଯେଉଁ କ୍ଷେତ୍ରରେ ଏଭଳି ସମ୍ଭବ ନ ହେବ ସେ କ୍ଷେତ୍ରରେ 'ଖ' ଉପଧାରା ଅନୁଯାୟୀ ବଣ୍ଟନ କରାଯିବ ।

(ଘ) ପ୍ରଦେଶର ସୀମାନ୍ତ ଓ ଉପକୂଳବର୍ତ୍ତୀ ଅଂଚଳରେ ପ୍ରଦେଶର ଅନ୍ୟଆଡ଼ୁ ଭୂମିହୀନ କୃଷି ଶ୍ରମିକଙ୍କୁ ନେଇ ବସବାସର ବ୍ୟବସ୍ଥା କରାଇବାକୁ ହେବ ।

## ଭୂମି ସଂପର୍କୀୟ ସମସ୍ତ ବିଷୟର ନିଷ୍ପତ୍ତି ସ୍ଥାନୀୟ ପଞ୍ଚାୟତ କରିବେ

**୩ । ପଞ୍ଚାୟତ ସଂଗଠନ:—**

(କ) ଅଂଚଳ ଶାସନ ଅଧୀନରେ କ୍ଷୁଦ୍ର କ୍ଷୁଦ୍ର ଅଂଚଳମାନଙ୍କରେ ପଞ୍ଚାୟତ ଗଠିତ ହେବ । କୌଣସି କ୍ଷେତ୍ରରେ ପଞ୍ଚାୟତ ଅଂଚଳର ଲୋକସଂଖ୍ୟା ୧୦,୦୦୦ରୁ ବେଶୀ ଓ ୨୫୦୦ରୁ କମ ହେବନାହିଁ ।

(ଖ) ପଞ୍ଚାୟତ ଅଧୀନରେ ପ୍ରତ୍ୟେକ ରେଭିନ୍ୟୁ ଗ୍ରାମରେ ଗ୍ରାମସଭା ରହିବ ।

(ଗ) ଅଂଚଳ ଶାସନମାନଙ୍କ ତତ୍ତ୍ୱାବଧାନରେ ପଞ୍ଚାୟତ ନିଜ ଅଂଚଳର ଖଜଣା ଆଦାୟର ଦାୟିତ୍ୱ ବହନ କରିବେ ଓ ଅଂଚଳର ସମସ୍ତ ଖଜଣାର ଶତକରା ୧୨½ ଭାଗ ପାଇବେ । ପଞ୍ଚାୟତର ଏହା ମୁଖ୍ୟ ପାଣ୍ଠି ହେବ ।

(ଘ) ପଞ୍ଚାୟତ ତାଙ୍କ ଅଂଚଳର ସମସ୍ତ ଚାଷଜମି ଓ ଗାଁଜମିର ନିୟନ୍ତ୍ରଣ କରିବେ ଏବଂ ଏ ସଂପର୍କରେ ସମସ୍ତ ବାଦ୍ ବିବାଦ, ମାଲମୋକଦ୍ଦମାର ନିଷ୍ପତ୍ତିମୂଳକ ସମାଧାନ କରିବେ ।

ନଷ୍ପତ୍ତି ପୂର୍ବରୁ ଯେଉଁ ଗ୍ରାମର ଜମି ହୋଇଥିବ, ସେ ଗ୍ରାମର ଗ୍ରାମସଭାଙ୍କ ମତ ଏ ବିଷୟରେ ନେବେ ।

(ଙ) 'ଘ' ଉପଧାରା ଅନୁସାରେ ପଞ୍ଚାୟତ ଯେଉଁ ନିଷ୍ପତ୍ତି ଗ୍ରହଣ କରିବେ, ସେ ନିଷ୍ପତ୍ତି ବିରୁଦ୍ଧରେ ଅଞ୍ଚଳ ଶାସନର "ଭୂମି-ଟ୍ରିବ୍ୟୁନାଲ" ପଞ୍ଚାୟତଙ୍କ ପ୍ରଧାନ କାର୍ଯ୍ୟାଳୟରେ ଅପିଲ ଶୁଣିବେ ଓ ତାଙ୍କର ନିଷ୍ପତ୍ତିହିଁ ଶେଷ ନିଷ୍ପତ୍ତି ହେବ । ପ୍ରତ୍ୟେକ ଅଞ୍ଚଳ ଶାସନର ଏ ଭଳି ଗୋଟିଏ ଲେଖାଏଁ "ଭୂମି-ଟ୍ରିବ୍ୟୁନାଲ" ରହିବ ।

(ଚ) ପ୍ରତି ଗ୍ରାମରେ ଶତକଡ଼ା ପାଞ୍ଚଭାଗ ଜମି ଗ୍ରାମସେବା ଉଦ୍ଦେଶ୍ୟରେ ବ୍ୟବହୃତ ହେବା ନିମନ୍ତେ ଗ୍ରାମସଭାଙ୍କ ମାରଫତରେ ରହିବ । ଗ୍ରାମସେବା ଉଦ୍ଦେଶ୍ୟରେ ବର୍ତ୍ତମାନ ଯେଉଁ ଗ୍ରାମର ଯେତେ ଜମି ଅଛି, ତାହା ସେହିପରି ରହିବ ।

(ଛ) ସର୍ବସାଧାରଣଙ୍କ ଜମି ଉପରେ ଗ୍ରାମଲୋକଙ୍କ ଅଧିକାର ରହିବ । ଗ୍ରାମସେବା ଏ ସବୁର ସୁରକ୍ଷାର ଦାୟିତ୍ୱ ବହନ କରିବେ ।

(ଜ) କୌଣସି ବ୍ୟକ୍ତି ଗ୍ରାମସଭାଙ୍କ ମତରେ କୌଣସି ପ୍ରକାର ଅସାମାଜିକ କାର୍ଯ୍ୟପାଇଁ ନିଜ ଜମି ବିକ୍ରୟ କରିପାରିବେ ନାହିଁ ।

(ଝ) ଗ୍ରାମ ବା ସମାଜର ଅମଙ୍ଗଳ ଘଟିବାର ସମ୍ଭାବନା ଥିଲେ କୌଣସି ଲୋକକୁ ଜମି ବିକ୍ରୟ କରିବାରେ ଗ୍ରାମସଭା ବାଧା ଦେଇ ପାରିବେ ।

(ଞ) କୌଣସି ଅଞ୍ଚଳର ଦୁଇ ତୃତୀୟାଂଶ କୃଷୀ ରାଜି ହେଲେ ଓ ସେମାନଙ୍କର ଜମିର ପରିମାଣ ଗ୍ରାମର ସମୁଦାୟ ଜମିର

ଶତକଡ଼ା ପଚୃଶ ଭାଗରୁ ବେଶୀ ହେଲେ ସେ ଅଞ୍ଚଳର ଜମିକୁ କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ପରିଣତ ହେବାକୁ ନ ଦେବା ଓ କ୍ଷୁଦ୍ର-କ୍ଷୁଦ୍ର ଜମି ଖଣ୍ଡକୁ ଏକତ୍ରୀକରଣ କରିବା ସଂପର୍କରେ ଆବଶ୍ୟକୀୟ ବ୍ୟବସ୍ଥା ସେ ଅଞ୍ଚଳରେ ପ୍ରବର୍ତ୍ତନ କରାଯିବ ଓ ସ୍ଥାନୀୟ ପଞ୍ଚାୟତ ତାକୁ କାର୍ଯ୍ୟକାରୀ କରାଇବେ ।

୪ । ଏ ରିପୋର୍ଟରେ କେତେକ ସ୍ଥଳରେ କେତେକ ବିଷୟକୁ ଗଣନା ଦ୍ୱାରା ସ୍ଥିର କରିବାର ଯେଉଁ ବ୍ୟବସ୍ଥା ରହିଛି, ତାହା ସ୍ଥାନୀୟ ପଞ୍ଚାୟତ କରିବେ ।

କମିଟି ପ୍ରଦେଶର ଭୂମି-ସଂସ୍କାର ବିଷୟରେ ଉପରୋକ୍ତ-ମତେ ନିଜର ମତ ବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ଜଣାଇ ଦେବାକୁ ଚାହାଁନ୍ତି ଯେ, ଉପରୋକ୍ତ ବ୍ୟବସ୍ଥାମାନ କାର୍ଯ୍ୟକାରୀ ହେବା ଦ୍ୱାରା ବର୍ତ୍ତମାନ ଜିଲ୍ଲା-ସଂଗଠନରେ ଥିବା ସବ୍‌ଡିଭିଜନମାନଙ୍କର ଆଉ କୌଣସି ଆବଶ୍ୟକତା ରହିବ ନାହିଁ । ଶାସନ ବିକେନ୍ଦ୍ରୀକରଣ ହୋଇ ଅଞ୍ଚଳ ଶାସନ, ପଞ୍ଚାୟତ ଓ ଗ୍ରାମସଭାମାନେ କାର୍ଯ୍ୟକାରୀ ହେବା ଫଳରେ ସବ୍‌ଡିଭିଜନମାନଙ୍କର ସେପରି କିଛି ଦାୟିତ୍ୱ ରହିବ ନାହିଁ ଓ ଜିଲ୍ଲା ସଂଗଠନର ବର୍ତ୍ତମାନ ରୂପ ବଦଳି ଅନ୍ୟ ଆକାର ଧାରଣ କରିବ । ଜିଲ୍ଲା ମାଜିଷ୍ଟ୍ରେଟମାନେ ଶାନ୍ତି ଶୃଙ୍ଖଳା ରକ୍ଷାକରିବା ସଙ୍ଗେ ସଙ୍ଗେ ଆଜକାଲି ଯେପରି ଜିଲ୍ଲା କଲେକ୍ଟର କାର୍ଯ୍ୟ କରୁଛନ୍ତି—ସେପରି ନ କରି ଜିଲ୍ଲାର ଉନ୍ନୟନ ଅଫିସର ଭାବରେ କାର୍ଯ୍ୟ କରିବେ । ଶାନ୍ତି ଶୃଙ୍ଖଳା ଓ ଉନ୍ନୟନ ପ୍ରତି ଦୃଷ୍ଟିରଖି ଜିଲ୍ଲାଗୁଡ଼ିକ ସଂଗଠନ କରିବାକୁ ହେଲେ ପ୍ରତ୍ୟେକ ପାର୍ଲାମେଣ୍ଟାରୀ ନିର୍ବାଚନ ମଣ୍ଡଳୀକୁ ଗୋଟିଏ ଲେଖାଏଁ ଜିଲ୍ଲାରେ ପରିଣତ କରିବା ସବୁଠୋଭବେ ସୁବିଧାଜନକ ହେବ ।

ଏହାଦ୍ୱାରା କେତେକ କ୍ଷେତ୍ରରେ ବର୍ତ୍ତମାନର ଜିଲ୍ଲାମାନଙ୍କର ଆୟତନ ଓ ଲୋକସଂଖ୍ୟା କମ ହୋଇଯିବାଦ୍ୱାରା ଜିଲ୍ଲା ମାଜିଷ୍ଟ୍ରେଟମାନେ ଜିଲ୍ଲାର ଉନ୍ନୟନ କାର୍ଯ୍ୟପ୍ରତି ବିଶେଷ ଧ୍ୟାନ ଦେଇ ପାରିବେ ।

ରେଭିନ୍ୟୁ ବ୍ୟାପାରରେ ଅଞ୍ଚଳଶାସନ ମାନଙ୍କଠାରେ ଚରମ କ୍ଷମତା ନ୍ୟସ୍ତ କରାଯାଇଥିବା ହେତୁ ପ୍ରଦେଶରେ ବର୍ତ୍ତମାନ ଥିବା ରେଭିନ୍ୟୁ ବୋର୍ଡ଼ର ମଧ୍ୟ କିଛି ଆବଶ୍ୟକତା ରହିବ ନାହିଁ ବୋଲି କମିଟି ମତ ବ୍ୟକ୍ତ କରୁଛନ୍ତି ।

ଶ୍ରୀ ନବକୃଷ୍ଣ ଚୌଧୁରୀ
ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ
ଶ୍ରୀ ହରେକୃଷ୍ଣ ମହତାବ
ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ
ଶ୍ରୀ ବିଶ୍ୱନାଥ ଦାସ
* ଶ୍ରୀ ପବିତ୍ରମୋହନ ପ୍ରଧାନ

---

*ମୁଁ ମୋର ପୃଥକ ମତ ଦେଇଛି ।

# ପୃଥକ ମତ

ଯେଉଁ ସାମାଜିକ ଓ ଅର୍ଥନୈତିକ ସମତା ଉଦ୍ଦେଶ୍ୟରେ ଏ ଭୂସଂସ୍କାର କରାଯାଉଛି, ତାହା (ସାମାଜିକ ଓ ଅର୍ଥନୈତିକ ସମତା) ସେତେ ଦିନ ପର୍ଯ୍ୟନ୍ତ ସାଧିତ ହୋଇ ପାରିବ ନାହିଁ, ଯେତେଦିନ ପର୍ଯ୍ୟନ୍ତ ସମାଜର ଅନ୍ୟାନ୍ୟ କ୍ଷେତ୍ରରେ ରୋଜଗାର କରୁଥିବା ବ୍ୟକ୍ତି ଓ ଗୋଷ୍ଠିଙ୍କର ସର୍ବୋଚ୍ଚ ଆୟ ଭୂସଂସ୍କାର ସ୍ୱରୂପ ଆଇନ ଦ୍ୱାରା ଧାର୍ଯ୍ୟ କରା ନ ଯାଉଛି । ତେଣୁ କୃଷି ବ୍ୟତୀତ ଶିଳ୍ପ, ବାଣିଜ୍ୟ ଏବଂ ଗୃହକର୍ମ କ୍ଷେତ୍ରରେ ମଧ୍ୟ କୃଷି ଅନୁରୂପ ସର୍ବୋଚ୍ଚ ଆୟ ବା ଆମଦାନି ନିର୍ଦ୍ଦିଷ୍ଟ ହେବା ନିତାନ୍ତ ଜରୁରୀ ଏବଂ ଅତ୍ୟଧିକ ବାଞ୍ଛନୀୟ । ତାହା ନ ହେଲେ ସମାଜରେ ଶୋଷଣ ଏବଂ ବୈଷମ୍ୟ ସଙ୍ଗେ ସଙ୍ଗେ ଅଶାନ୍ତି ଏବଂ ଅସନ୍ତୋଷ ସର୍ବଦା ଜୀବିତ ଏବଂ ଜାଗ୍ରତ ରହି ରାଷ୍ଟ୍ର ଏବଂ ସମାଜର ଅଭ୍ୟନ୍ତରରେ ପ୍ରତି ମୁହୂର୍ତ୍ତରେ ଆଶଙ୍କା ଏବଂ ବିପଦ ଘଟାଉଥିବ । ନାନା ଜଟିଳତା ଦୃଷ୍ଟିରୁ ଶିଳ୍ପ ଏବଂ ବାଣିଜ୍ୟ କ୍ଷେତ୍ରରେ ସର୍ବୋଚ୍ଚ-ଆୟ-ନିର୍ଦ୍ଧାରଣ ସମୟସାପେକ୍ଷ ହୋଇପାରେ; କିନ୍ତୁ ଗୃହକର୍ମ କ୍ଷେତ୍ରରେ ସର୍ବାଧିକ ଆୟ-ନିର୍ଦ୍ଧାରଣ କଲମ ଗାରକରେ କିମ୍ବା ଅତି ବଳ ହେଲେ ଲୋକସଭା ଓ ଆଇନସଭାର ଏକ ଆଇନ ଦ୍ୱାରା ଅନାୟାସରେ ସ୍ଥିର କରାଯାଇ ପାରେ । ତେଣୁ ଭୂସଂସ୍କାର ଅପେକ୍ଷା ବେତନସଂସ୍କାର ଅତ୍ୟନ୍ତ ସହଜ ଓ ସରଳ । ଅତଏବ ଭୂ-ସଂସ୍କାର ପୂର୍ବରୁ ବେତନ-ସଂସ୍କାର ହେବାର ଥିଲା । ଆଜି ଅତି ବିଳମ୍ବ ହେଲେ ସୁଦ୍ଧା ଭୂ-ସଂସ୍କାର ସଙ୍ଗେ ସଙ୍ଗେ ସମାନ୍ତରାଳଭାବେ ବେତନସଂସ୍କାର ଅତ୍ୟନ୍ତ ଜରୁରୀ ଏବଂ ବାଞ୍ଛନୀୟ ।

ଉପର୍ଯ୍ୟୁକ୍ତ କାରଣଦୃଷ୍ଟେ ମୁଁ କମିଟି ଆଗରେ ମୋର ଦୃଢ଼ମତ ଉପସ୍ଥାପିତ କରିଥିଲି ଯେ ଭୂ-ସଂସ୍କାର ଏବଂ ବେତନ

ସଂସ୍କାର ସମାନ୍ତରାଳ ଭାବରେ ଚାଲୁ । କିନ୍ତୁ ତାହା ଗୃହୀତ ହୋଇ ପାରିଲା ନାହିଁ । ତେବେ ସୁଦ୍ଧା ମୁଁ ମୋର ସେହି ଦୃଢ଼ମତ ପୋଷଣ କରି ଉପସ୍ଥାପିତ କରୁଛି ।

Present Ceiling ବା ଉପସ୍ଥିତ ସର୍ବୋଚ୍ଚ-ଭୂମ୍ୟଧିକାର ସମ୍ପର୍କରେ ମୋର ମତ ଥିଲା ଯେ ଏହା ବନ୍ଧ (ପୋଖରୀ) ବଗାଏତ ବ୍ୟତୀତ ୧୫୦ ଏକର ମଧ୍ୟରେ ସୀମିତ ରହୁ । ଏ ସମ୍ପର୍କରେ ମୁଁ ନାନା ଅର୍ଥନୈତିକ ଓ ସାମାଜିକ କାରଣ ଦର୍ଶାଇଅଛି । ପରିଶେଷରେ ଯେତେବେଳେ ସର୍ବୋଚ୍ଚ ଜମି-ଅଧିକାର ନେଟ୍ ଆୟ (Net profit) ଉପରେ ପ୍ରତିଷ୍ଠିତ ହେବବୋଲି ବହୁମତରେ ଗୃହୀତ ହେଲା, ସେତେବେଳେ ମୁଁ ମତ ଦେଇଥିଲି ଯେ ଯେଉଁ ଜମିର ନେଟ୍-ଆୟ ଟ ୭୦୦୦୲ (ସାତହଜାର ଟଙ୍କା) ହେବ, ସେହି ପରିମାଣର ଭୂ-ସମ୍ପତ୍ତି ସର୍ବୋଚ୍ଚ ସମ୍ପତ୍ତି ବୋଲି ଧରାଯାଉ । କିନ୍ତୁ ସଙ୍ଗେ ସଙ୍ଗେ ମଧ୍ୟ ଏହି ସର୍ତ୍ତ ରଖିଥିଲି ଯେ କୃଷକମାନଙ୍କ କ୍ଷେତ୍ରରେ ମଧ୍ୟ ତାହାର ବାର୍ଷିକ ଦରମା ସାତହଜାର ଟଙ୍କାରୁ ଊର୍ଦ୍ଧ୍ୱ ନ ହେଉ କିମ୍ବା ସର୍ବନିମ୍ନ ମାସିକ ଆୟ ଟ ୫୦୲ (ପଚାଶ ଟଙ୍କା)ରୁ କମ୍ ନ ହେଉ ।

ଭବିଷ୍ୟତ Ceiling ବିଷୟରେ ମୋର ମତ ଯେ ୩୦ ଏକର (ତିରିଶ ଏକର)ରୁ ଅଧିକ ଜମି କେହି ଅଧିକାର କରିପାରିବେ ନାହିଁ ।

ଅଫିମଖୋର, ମଦ୍ୟପୀ ଇତ୍ୟାଦି ବେ-ସାମାଜିକ ଲୋକେ ତାଙ୍କ ସ୍ତ୍ରୀ, ସନ୍ତାନସନ୍ତତି ପ୍ରଭୃତି ଏକାନ୍ନବର୍ତ୍ତୀ ଲୋକଙ୍କର ଆପତ୍ତି ହେଲେ ନିଜ ଅଧିକାରନ୍ତେ ଥିବା ଜମି ମାଦକ କିମ୍ବା ନିଶା ପ୍ରଭୃତି ବେ-ସାମାଜିକ ଉଦ୍ଦେଶ୍ୟରେ ବିକ୍ରୟ କରିପାରିବେ ନାହିଁ ।

ଏ ବିଷୟଟି ମୁଁ ଦର୍ଶାଇଥିଲି । ଏହା କମିଟିରେ ଗୃହୀତ ହୋଇଥିଲା; କିନ୍ତୁ ଏଥିର ଉଲ୍ଲେଖ ନାହିଁ ।

ବିଧବାମାନେ ହୁଏତ ସ୍ୱତନ୍ତ୍ର ଖୋରାକ ପୋଷାକ ପାଇବେ କିମ୍ବା ନିଜ ଜମି ସ୍ୱଗ-ଗୃଷରେ ଲଗାଇ ପାରିବେ । ଏହା ମୋର ଅନ୍ୟ ଏକ ମତ ।

ରିପୋର୍ଟର ପ୍ରଥମ ପୃଷ୍ଠାର ଶେଷ ପାରାଗ୍ରାଫ୍‌ରେ ଅର୍ଥାତ ଗୃଷୀ 'ଜମିର ମାଲିକ ହେବ' ଶିରୋନାମାର (୧)ରେ ପ୍ରଥମ ଧାଡ଼ିରେ 'ଗୃଷକରୁଥିବେ' ଏବଂ 'ତାଙ୍କୁ' ଏହି ଦୁଇ ଶବ୍ଦମଧ୍ୟରେ 'କିମ୍ବା ଗୃଷକରାଉଥିବେ' ଶବ୍ଦଗୁଡ଼ିକ ରହିବା ଦରକାର ।

**ଶ୍ରୀ ପବିତ୍ରମୋହନ ପ୍ରଧାନ**
ତା୨୮-୧-୫୩

※ ※ ※

ଶ୍ରୀ ପବିତ୍ରମୋହନ ପ୍ରଧାନ ପୃଥକ ମତ ଦେବାକୁ ଯାଇ ବେତନ-ସଂସ୍କାର ସମ୍ପର୍କରେ ଯାହା ଉତ୍ଥାପନ କରିଛନ୍ତି, କମିଟିର ଅନ୍ୟ ସଭ୍ୟମାନେ ନୀତିଦୃଷ୍ଟିରୁ ତାଙ୍କ ସହିତ ମୂଳତଃ ଏକମତ ହେଉଥିଲେ ମଧ୍ୟ ଏ କମିଟିର କାର୍ଯ୍ୟର ପରିସର ଭିତରେ ତାହା ଆସିପାରିବ ନାହିଁ ବୋଲି ବିଚାରି ସେ ବିଷୟକୁ ରିପୋର୍ଟରେ ସ୍ଥାନ ଦେବା ଉଚିତ ମନେକରି ନାହାନ୍ତି ।

**ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ**
ତା-୨୮-୧-୫୩

